# ଆମରି ଶାଳବଣ

ପ୍ରଫୁଲ୍ଲ କୁମାର ଜେନା
ସୂର୍ଯ୍ୟମଣି ବେହେରା





ଏହି ପୁସ୍ତକଟି ନ୍ୟାଚୁରାଲ୍ ରିସୋର୍ସେସ୍ ଡେଭଲପ୍‌ମେଣ୍ଟ ଫାଉଣ୍ଡେସନ, ଭୁବନେଶ୍ୱର ଓ ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆଙ୍କ ସଂଯୁକ୍ତ ତତ୍ତ୍ୱାବଧାନରେ ଆୟୋଜିତ କର୍ମଶାଳାରେ ପ୍ରସ୍ତୁତ ।

ISBN 81-237-2238-9

1997 (ଶକାବ୍ଦ 1919)



Amari Salabana *(Oriya)*

ଟ. 7.50

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ,
ନୂଆଦିଲ୍ଲୀ-110 016 କର୍ତ୍ତୃକ ପ୍ରକାଶିତ ।

*ନବସାକ୍ଷର ସାହିତ୍ୟମାଳା*

# ଆମରି ଶାଳବଣ

ପ୍ରଫୁଲ୍ଲ କୁମାର ଜେନା
ସୂର୍ଯ୍ୟମଣି ବେହେରା

ଅଳଙ୍କରଣ

କଳ୍ପନା ମହାନ୍ତି ରାୟ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ମକରାର ମନ ଅଥୟ ହେଉଛି

ଖରାଦିନ। ପାହାନ୍ତି ପହର। ମକରା ଘର ଅଗଣାରେ ଶୋଇଛି। ସୁଲୁସୁଲିଆ ପବନ ତା ଦେହରେ ବାଜୁଛି। କୁଆ ରାବିଲେଣି। ତଥାପି ମକରାର ନିଦ ଭାଙ୍ଗୁନି। ଶେଯରୁ ଉଠିବାକୁ ଇଚ୍ଛା ହେଉନି।

ହଠାତ୍ ଦମକାଏ ଗରମ ପବନ ତା ଦେହରେ ବାଜିଲା। ମକରା ଉଠି ପଡ଼ିଲା, ଚାରିଆଡ଼େ ଚାହିଁଲା। ଦେଖିଲା—ତା ଗାଁ ପାଖ ବଣରେ କିଏ ନିଆଁ ଲଗେଇ ଦେଇଛି। ଶୁଖିଲା ପତର ଜଳୁଛି। ତଳେ ପଡ଼ିଥିବା ଶୁଖିଲାକାଠ ସବୁ ଜଳୁଛି। ଘାସ-ଲତା ପୋଡ଼ି ପାଉଁଶ ହୋଇଯାଉଛି। ପଶୁପକ୍ଷୀ ସବୁ ଯେ ଯୁଆଡ଼େ ଧାଇଁ ଦଉଡ଼ି ପଳାଉଛନ୍ତି।

ଅଳସ ଭାଙ୍ଗି ମକରା ଠିଆ ହୋଇ ପଡ଼ିଲା। ମନ ତାର ଅଥୟ ହେଲା। ବଣପୋଡ଼ି ସହି ପାରିଲା ନାହିଁ। ମନକୁ ମନ କେତେ କଥା ଭାବି ଚାଲିଲା।

ତା ବୟସ ବେଶୀ ନୁହେଁ। ତିରିଶ-ପଇଁତିରିଶ ଭିତରେ। ଅଧା ପାଠୁଆଟେ। ହେଲେ—ପାଠପଢ଼ା ପିଲାର କାନ କାଟିଦେବ। ସବୁ କଥାକୁ ନଜର।

ମକରା ଭାବି ଚାଲିଛି। ଏଇ ବଣ ଆମର ଅତି ଆପଣାର। ଏଇ ବଣରେ ଜାତି ଜାତିକା ଗଛ ରହିଛି। ସେଗୁଡ଼ିକ ଭିତରୁ ସବୁଠୁ ବେଶୀ ଭାଗ ହେଉଛି—ଶାଳଗଛ।

କେତେ ସୁନ୍ଦର ଏଇ ଶାଳଗଛ। ଏ ବଣ ତ ବଣ ନୁହେଁ।

ନାଁଟି ତା'ର ଶାଳବଣ। ଏହାରି ପାଇଁ ଆମ ହାତକୁ ଦି-ପଇସା ବି ଆସୁଛି।

ଏଇ ଗଛର କାଠରୁ କଣ ବା ନ ହେଉଛି! ଘର କରଣାର ସବୁ ସଜ ଏହାରି ପାଇଁ। ଚଉକାଠ ହେଉଛି। ଝରକା ବି ହେଉଛି। ଟେବୁଲ ଚଉକି ହେଉଛି। ରେଳଗାଡ଼ିର ଯିବା ଆସିବା ବାଟରେ ବି ଲାଗୁଛି।

ଆହୁରି ଏଇଗଛ ଆମକୁ ପତର ଦେଉଛି। ଏଇ ପତ୍ରରୁ ଖଲି, ଚଉତି ବି ହେଉଛି। ଝୁଣା ମିଳୁଛି।

ଶାଳମଞ୍ଜି ବି କେତେ କାମରେ ଲାଗୁଛି। ଏଥିରୁ ଖାଇବା ତେଲ ହେଉଛି।

ସାବୁନ ହେଉଛି। ଘିଅ ବି ହେଉଛି। ଔଷଧ ପାଇଁ ବି ଦରକାର ହେଉଛି। ସତରେ କେତେ ଉପକାରୀ ଏଇ ଶାଳବଣ।

ଏ ଗଛକୁ ଲଗେଇଲେ ହୁଏ ନାହିଁ। ତା ମଞ୍ଜି ମନକୁ ମନ ତଳେ ପଡି ହୁଏ। ଏପରି ଅତି ଆପଣାର ବଣକୁ ଯଦି ପୋଡି ଦିଆହେବ ତେବେ ଏମିତିକା ବଣ ଆଉ ରହିବ ନାହିଁ।

ଏ ବଣ ପରା ଆମରି ଭାତହାଣ୍ଡି। ବେଳ ଅବେଳରେ ଆମକୁ ଚଳେଇ ନେଉଛି।

ମକରା ଠିକ୍ କଲା। ନା- ଏ ବଣକୁ ଏମିତିକା ଜାଳିପୋଡି ନଷ୍ଟ ହେବାକୁ ଦେବ ନାହିଁ। ବଣରୁ ଗଛଟିଏ ବି ହାଣିବାକୁ ଦେବନାହିଁ। ଏହାକୁ ଯେମିତି ହେଲେ ବନ୍ଦ କରିବାକୁ ପଡିବ। ଯିଏ ଏପରି କରୁଛି ବା କରିବ, ତାକୁ ବୁଝେଇବାକୁ ହେବ। ମିଳିମିଶି ବଣକୁ ରକ୍ଷା କରିବାକୁ ହେବ।

# ଶାଳ ଗଛର କଥା

ମକରା ଦିନ ସାରା ଘୂରି ବୁଲୁଛି। ଗାଁରେ ଯାହାକୁ ଦେଖୁଛି ତାକୁ ସେଇ ଶାଳବଣ ପୋଡି କଥା କହୁଛି। ବୁଲି ବୁଲି ଯାଇ ଶେଷରେ ଗାଁ ମୁଖିଆଙ୍କ ଘରେ ପହଞ୍ଚିଲା। ଦେଖିଲା —ଗ୍ରାମସେବକ ବି ସେଠାରେ ଅଛନ୍ତି।

ମକରାକୁ ଦେଖି ଗ୍ରାମସେବକ ଡାକିଲେ। କହିଲେ-ଆରେ ମକରା। ଖବର କଣ ? ମୁହଁକୁ ହାଣ୍ଡି ପରି କରିଛୁ କାହିଁକି ?

ମକରା କହିଲା- ତୁମେ ବାବୁ ସବୁ ବଡ ଲୋକ। ତୁମ ମାନଙ୍କର କିଛି ଅଭାବ ନାହିଁ। ଆଜି ଆମ ଗାଁ ପାଖ ବଣରେ କିଏ ନିଆଁ ଲଗେଇ ଦେଇଛି। ସାନ ସାନ ଗଛ ସବୁ ଜଳି ଯାଉଛି। ବୁଦୁବୁଦିଆ ଛୋଟ ଛୋଟ ଶାଳଗଛ ସବୁ ପୋଡି ପାଉଁଶ ହୋଇଯାଉଛି। ଏମିତି କଲେ ପତର କେଉଁଠୁ ମିଳିବ ?

ଆଚ୍ଛା ମୁଖିଆବାବୁ! ତମେ ପରା ଖଲି ତିଆରି ମେସିନ୍ ଆମ ପାଇଁ ଆଣି ଦେଇଛ। କହୁଥିଲ— ହାତରେ ସିଲେଇକରା ଖଲିର ଦାମ୍ କମ୍। ମେସିନ୍‌ରେ ଯଦି ଖଲି ତିଆରି କରା ହେବ, ତାହା ମଜଭୁତ୍ ହେବ। ଆଉ ବେଶୀ ଦାମ୍‌ରେ ଆମେ ବିକି ପାରିବୁ।

ଆମେ ପରା ତୁମରି କଥା ମାନି ଚଳୁଛୁ। ମେସିନ୍‌ରେ ଖଲି ଚଉତି ତିଆରି କରି ଭଲ ଦି-ପଇସା ପାଉଛୁ। କହିଲ ଦେଖି- ଏମିତି ଯଦି ବଣରେ ଆମେ ନିଆଁ ଲଗେଇ ଦେବା, ତେବେ ପତରଟିଏ ବି ମିଳିବ ନାହିଁ। ମେସିନ୍ ରଖିବା ବେକାର ହୋଇଯିବ।

ମକରାର କଥା ମୁଖିଆ ମନ ଦେଇ ଶୁଣୁଥିଲେ। ଶୁଣିସାରି

କହିଲେ— ହଁରେ ମକରା; ତୁ ଠିକ୍ କଥା କହିଛୁ। ସେଇ କଥା ଏଇନେ ମୁଁ ଗ୍ରାମସେବକଙ୍କୁ କହୁଥିଲି। ତୁ ବି ଠିକ୍ ବେଳରେ ଆସିଯାଉଛୁ। ସେ ଆମକୁ ଶାଳଗଛ ବିଷୟରେ ଅନେକ ଜାଣିବା କଥା କହିବେ।

ମକରା! ତୁ ବେଇଗି ଯା। ଗାଁ ସାରା କହିଦେବୁ। ଯିଏ ଥିବ, ଏଠାକୁ ଆସିବ। ସଭିଏଁ ତାଙ୍କ କଥା ଶୁଣିବେ।

ମକରା ଗାଁ ଭିତରକୁ ଯାଇ ଲୋକମାନଙ୍କୁ ଖବର ଦେଇଦେଲା। ଖବର ପାଇ ସମସ୍ତେ ଆସିଗଲେ।

ଲୋକମାନେ ଆସିଯିବାରୁ ଗ୍ରାମସେବକ କହିଲେ— ମୁଁ ଯାହା କହିବି, ମନ ଦେଇ ଶୁଣିବ। ଏଇ ଶାଳବଣର କଥା କହିବି। ଏଇଠି ଶାଳଗଛ ସବୁ ତୁମେ ମାନେ ଦେଖୁଛ। ହେଲେ, ଅନେକ ଜାଣିବା କଥା ସବୁ ରହିଛି। ଏଇ ଗଛ କେତେ ଯେ ଉପକାରୀ, ତାହା ତୁମେ ଶୁଣିଲେ ଜାଣି ପାରିବ।

ତୁମେ ତ ସବୁ ଜାଣ, ପାହାଡ଼ ଯେଉଁଠି, ଶାଳବଣ ସେଇଠି।

ସେଇ ଗଛର ପତର ଟାଣୁଆ। ସହଜରେ ଦଳିମକଚି ଦେଲେ ବି ଗୁଣ୍ଡ ହୋଇଯାଏ ନାହିଁ। ତୁମେ ସବୁ ଏଇ ପତରରୁ ଖଲି ତିଆରି କରୁଛ। ଚଉତି ବି ତିଆରି କରୁଛ। କେହି କେହି ହାତରେ ସିଲେଇ କରୁଛ। ମୁଖିଆବାବୁ କହୁଥିଲେ— ତୁମ ଭିତରୁ କେଇଜଣ ଖଲି ତିଆରି ମେସିନ୍ ବସେଇଛ। ତା'ରି ସାହାଯ୍ୟରେ ବି ଖଲି ଚଉତି କରୁଛ। କହିବାକୁ ଗଲେ— ସଭିଏଁ ଦି-ପଇସା ରୋଜଗାର କରୁଛ।

ହଁ, ତୁମେ ତ ସବୁ ଦେଖିଥିବ। ଏଇ ଶାଳଗଛ ସାନ ଥିଲାବେଳେ ବୁଦୁବୁଦିଆ ଦିଶେ। ଗଛଟି ସରୁ ଥିବାରୁ ଆମେ ତାକୁ ଭାଙ୍ଗି ଦାନ୍ତକାଠି

କରି ଦାନ୍ତ ଘଷୁ। ଆଚ୍ଛା, କହିଲ ଦେଖି, ଖଣ୍ଡିଏ ଦାନ୍ତକାଠି ପାଇଁ ଗୋଟିଏ ଶାଳଗଛ ଗଲା। ତୁମେ ସବୁ ସାହାଡ଼ା, କରଞ୍ଜ, ନିମ୍ବ ଦାନ୍ତକାଠି ଦାନ୍ତ ଘଷିବା ପାଇଁ ନିଅ। କିଛି ଅସୁବିଧା ନାହିଁ। ତହିଁରେ ଔଷଧ ଗୁଣ ବି ରହିଛି।

ତେଣୁ ମନେ ରଖ। ସାନ ସାନ ଶାଳ ଗଛରେ ହାତ ଦେବ ନାହିଁ। ଏ ଗଛ ଥରେ ମଲେ ଆଉ ହେବ ନାହିଁ।

ହଁ, ଏଇଗଛ ବଡ଼ ହୋଇଗଲେ ସିଧାସଳଖ ଭାବରେ ଲମ୍ବ ହୋଇ ବଢି ଚାଲେ। ତା ପରେ ଡାଳ ମେଲେଇ ଥାଏ। ଖୁବ୍ ବଡ଼ ହୋଇଗଲେ ଧିରେ ଧିରେ ମୋଟା ହୋଇଯାଏ। ବେଶୀ ଦିନର ଗଛ ହୋଇଗଲେ, ତା'ର ବକଳା ଫାଟି ଫାଟି ଯାଏ।



ଶାଳଗଛ ପାକଳ ହୋଇଗଲେ ଫୁଲ ଆସେ। ମାଘ-ଫଗୁଣରେ ଏହା ଦେଖାଯାଏ। ସେତିକିବେଳେ ଶାଳବଣକୁ ଦେଖିବ। ସତରେ କେତେ ସୁନ୍ଦର ଦିଶେ। ଏଇ ଫୁଲରେ ଗଛସବୁ ନହକି ପଡୁଥିବ। ଫୁଲର ବାସନା ମହକୁ ଥିବ। ମହୁମାଛି ମାନେ ବି ମହୁ ତିଆରିରେ ଲାଗିଥିବେ।

ତା'ପରେ ଏଇ ଫୁଲରୁ ଫଳ ଧରେ। ଜ୍ୟେଷ୍ଠ-ଆଷାଢ ମାସ ବେଳକୁ ପାଚିଥାଏ। ଏଇ ଦେଖ, ଏହା ଗୋଟିଏ ଶାଳଫୁଲ। ଏଥିରେ ଡେ଼ଣା ରହିଛି। କଞ୍ଚା ବେଳେ ଏହା ସବୁଜ ଦିଶେ। ପାଚି ଶୁଖିଗଲେ ଧଳା ମିଶା ମାଟିଆ ରଙ୍ଗର ହୋଇଯାଏ।

ଏଇ ଶାଳ ଫୁଲରୁ ଡେ଼ଣା ଆଉ ଖୋଳପା ଛଡ଼ାଇ ଦେଲେ ତହିଁରୁ ସବୁଜ ରଙ୍ଗର ଶାଳମଞ୍ଜି ବାହାରେ।

ଆଗରୁ ଏହାର ବ୍ୟବହାର ଜଣା ନଥିଲା। ଏବେ ଏହାର ଚାହିଦା କହିଲେ ନ ସରେ। ତହିଁରୁ ଅନେକ ରକମର ଜିନିଷ ତିଆରି ହେଉଛି। ଏଥିରୁ ତେଲ ହେଉଛି। ଘିଅ ବି ହେଉଛି। ତା ପିଡ଼ିଆରୁ ଗାଈ-ଗୋରୁମାନଙ୍କର ଖାଇବା ଜିନିଷ ବି ତିଆରି ହେଉଛି।

ଆହୁରି ଜାଣିଛ, ଏଇ ଶାଳ ଗଛରୁ ଆମେ ଝୁଣା ପାଉଛୁଁ। ଏଇ ଝୁଣା ଆମର ଅନେକ କାମରେ ଲାଗୁଛି। ଠାକୁର ପୂଜାବେଳେ ଏଇ ଝୁଣା ଦରକାର ହୋଇଥାଏ। ଝୁଣାକୁ ଗୁଣ୍ଡ କରି ନିଆଁରେ ପକାଇଦେଲେ ବଢିଆ ବାସନା ଧୂଆଁ ବାହାରେ। ତାକୁ ଧୂପ କହି ଠାକୁର ପୂଜା କରୁ।

ଏହାର ଔଷଧଗୁଣ ବି ରହିଛି। ରୋଗ ଜୀବାଣୁ, କୀଟ, ଅସରପା ସବୁ ଏଇ ଧୂଆଁରେ ପଳେଇ ଯାଆନ୍ତି।




ଧୂପକାଠି କଥା କିଏ ବା ନ ଜାଣେ। ବଜାରରୁ କିଣା ହେଉଛି। ତାହାରି ତିଆରି ପାଇଁ ଝୁଣା ଲାଗୁଛି।

ଆମ ଓଡ଼ିଶାରେ ସିନା ଏଇଗଛ ଶାଳ ଗଛ ନାମରେ ପରିଚିତ, ହେଲେ ଏହାର ଆହୁରି ଅନେକ ନାମ ରହିଛି।

କେତେକ ସ୍ଥାନରେ ଏହା ରେଙ୍ଗାଲ ନାମରେ ପରିଚିତ। ଆଉ କେତେକ ଯାଗାରେ ଏହାକୁ ସାରଙ୍ଗୀ ଗଛ ବୋଲି କୁହାଯାଇଥାଏ।

ଏଇ ଶାଳଗଛ ଖାଲି ଓଡ଼ିଶାରେ ନୁହେଁ, ବିହାର, ପଶ୍ଚିମ ବଙ୍ଗ ଓ ଆସାମରେ ବି ଦେଖାଯାଏ।

ଏତିକିବେଳେ ଚା ଆସିଲା। ଗ୍ରାମ ସେବକ ବାବୁ ତାଙ୍କ କଥା ସେଇଠି ରଖିଲେ। ସଭିଏଁ ଚା ପିଇବାରେ ମନ ଦେଲେ।

# ଶାଳମଞ୍ଜିରୁ ତେଲ

ଚା ପିଇବା କାମ ଶେଷ ହେଲା । ଗ୍ରାମ ସେବକବାବୁ ପୁଣି କହିବା ଆରମ୍ଭ କଲେ । ଠିକ୍ ଏତିକିବେଳେ ମକରା ପଚାରିଲା-ବାବୁ ! ଶାଳମଞ୍ଜିରୁ ତେଲ ବାହାରେ, ଏ କଥା ତ ଆମେ ଜାଣିଥିଲୁ । ହେଲେ, ଏହି ତେଲ କଣ ଖାଇହେବ ?

ଗ୍ରାମ ସେବକ ବାବୁ ହସି ହସି କହିଲେ — ହଁ, ଏକଥା ସତ । ଏହା ସୋରିଷ ତେଲ, ବାଦାମ ତେଲ ଭଳିଆ ଖାଇବା ତେଲ ହିସାବରେ ବ୍ୟବହାର କରିହେବ । ବର୍ତ୍ତମାନ ସେଇ କଥା କହୁଛି, ଶୁଣ ।

ତୁମକୁ ତ ଏଇ ଟିକିଏ ଆଗରୁ କହୁଥିଲି — ଶାଳଫଳ ଜ୍ୟେଷ୍ଠ-ଆଷାଢ ମାସ ବେଳକୁ ପାଚିଥାଏ । ପାଚିଗଲା ପରେ ସେଇ ଫଳ ସବୁ ତଳକୁ ଖସିପଡ଼େ । ଏହାକୁ ସେତିକିବେଳେ ଗୋଟାଇ ରଖାଯାଏ ।

ତା'ପରେ ଶାଳଫଳର ଡ଼େଣା ଆଉ ଖୋଳପାକୁ ଛଡାଇ ଦିଆ ହୁଏ ।

ଏହାକୁ ଆଗରୁ ନିଆଁରେ ପୋଡ଼ି କରା ହେଉଥିଲା । ମାତ୍ର ଯେତେବେଳେ ଜଣାଗଲା ଯେ- ଏପରି କଲେ ଶାଳମଞ୍ଜିରୁ ତେଲ ଭାଗ କମିଯାଉଛି — ସେତେବେଳେ ଆଉ ସେପରି କରାଗଲା ନାହିଁ ।

ପୁଣି ଶାଳଫଳ ଉପରର ଡ଼େଣା ଆଉ ଖୋଳପାରୁ ଯେଉଁ ସବୁ ଜିନିଷ ହେବା କଥା, ପୋଡିବା ଦ୍ୱାରା ତାହା ନଷ୍ଟ ହୋଇ ଯାଉଥିଲା ।

ଆଜିକାଲି ଶାଳଫଳର ଉପରଚୋପା ଛଡ଼ାଇବା ପାଇଁ ଆଗ ଖରାରେ ଶୁଖାଇବାକୁ ପଡିଥାଏ । ତା ପରେ ଦଳି ମକଚି ଦେଲେ

ସେ ସବୁ ଅଲଗା ହୋଇ ଯାଇଥାଏ।

ଏବେ ଶାଳମଞ୍ଜିରୁ ତେଲ କେମିତି ହୁଏ, ଶୁଣ। ତୁମେ ବି ତାହା କରି ପାରିବ।

ଏଥିପାଇଁ ଆଗ ଶାଳମଞ୍ଜିକୁ ଖରାରେ ଶୁଖାଇଦେବ। ତା ପରେ ସେହି ମଞ୍ଜିକୁ ନେଇ ଢେଙ୍କିରେ କୁଟି କୁଟି ଗୁଣ୍ଡ କରିଦେବ।

ଗୁଣ୍ଡ କରିସାରି ଗୋଟିଏ କରେଇରେ ତାକୁ ନେବ। ଯେତିକିଗୁଣ୍ଡ ନେଇଥିବ, ତାର ଦୁଇଗୁଣ ପାଣି ତହିଁରେ ମିଶାଇଦେବ। ବର୍ତ୍ତମାନ କରେଇଟିକୁ ଚୂଲୀରେ ବସାଇ ଗରମ କର।

ଦେଖିବ, କିଛି ସମୟ ଭିତରେ ଶାଳମଞ୍ଜିରୁ ତେଲ ବାହାରି ଆସିବ। ଆଉ ପାଣି ଉପରେ ଭାସି ଉଠିବ।

ତୁମେ ତ ସବୁ ଜାଣ, ତେଲ ପାଣିରେ ମିଶେ ନାହିଁ। ତେଣୁ ଏଇ ତେଲକୁ ପାଣି ଉପରୁ ପକ୍ଷୀର ପର ସାହାଯ୍ୟରେ ଛାଣି ଆଣି ଆଉ ଗୋଟିଏ ବାସନରେ ରଖ।

ଏଇ ହେଲା-ଶାଳମଞ୍ଜି ତେଲ। ହଁ, ଏଇ ଶାଳମଞ୍ଜି ତେଲ ଥଣ୍ଡା ହୋଇଗଲେ ଘିଅ ଭଳିଆ ବହଳିଆ ହୋଇଯାଏ। ଦେଖିବାକୁ ସବୁଜ ରଙ୍ଗର। ଟିକିଏ ବାସି ଉଠିଥାଏ।

ଏହି ତେଲରେ ଭିଟାମିନ୍ ରହିଛି। ହେଲେ ଏହାକୁ ତୁମେ ତିଆରି କରି ଖାଇବାରେ ଟିକିଏ ଅସୁବିଧା ରହିଛି। ଖାଇଲେ ବଦ୍‌ହଜମୀ ହେବ। କାରଣ ତହିଁରେ କେତୋଟି ଅନିଷ୍ଟକାରୀ ଜିନିଷ ରହିଛି। ତେଣୁ କଳକାରଖାନାରେ ସେଇ ତେଲକୁ ଶୋଧନ କରି ଖାଇବା ତେଲ କରା ହୋଇଥାଏ। ବିଦେଶକୁ ବି ଏଇ ତେଲ ପଠା ଯାଉଛି।

# ତେଲରୁ ଘିଅ

ଶାଳମଞ୍ଜି ତେଲ କଥା ଶୁଣି ସଭିଏଁ ଖୁସି ହେଲେ। ଏଥିରୁ ଘିଅ କେମିତି ତିଆରି ହୁଏ, ସେମାନେ ଜାଣିବାକୁ ଚାହିଁଲେ। ଗ୍ରାମସେବକବାବୁ ସେ ବିଷୟରେ କହିବା ଆରମ୍ଭ କଲେ-

ଶାଳମଞ୍ଜି ତେଲରୁ ଘିଅ ହୋଇ ପାରୁଛି। ଆମେ ସବୁ ଡାଲଡ଼ା ଘିଅ କଥା ଜାଣିଛୁ। ତା'ରି ତିଆରି ପାଇଁ ବାଦାମ ତେଲ, କପାମଞ୍ଜି ତେଲ କିମ୍ବା ରାଶି ତେଲ ଭଳିଆ ଏକ ତେଲ ଦରକାର ହୋଇଥାଏ। ଏବେ ଏଇ ଧରଣର ତେଲ ବଦଳରେ ଶାଳମଞ୍ଜି ତେଲକୁ ବ୍ୟବହାର କରି ଘିଅ ତିଆରି ହେଉଛି।

ବର୍ତ୍ତମାନ କାରଖାନାରେ ଏଇ ତେଲରୁ କେମିତି ଘିଅ ହେଉଛି, ଶୁଣ।

ଏହାକୁ ତିଆରି କରିବା ପାଇଁ ପ୍ରଥମେ ତେଲକୁ ନିଆଯାଏ। ତା'ପରେ ତହିଁରେ ଉଦ୍‌ଜାନ ନାମକ ଏକ ଗ୍ୟାସ୍‌କୁ ଛଡ଼ା ଯାଇଥାଏ। ଆହୁରି ଦୁଇ-ତିନୋଟି ଜିନିଷର ବି ଦରକାର ହୋଇଥାଏ।

ହେଲେ, ଏଇ ଗ୍ୟାସ୍ ତେଲକୁ ଘିଅରେ ପରିଣତ କରି ଦେଇଥାଏ। ତା'ପରେ ବିଶୋଧନ କରି ଟିଣରେ ପ୍ୟାକିଂ କରାଯାଏ ଓ ବଜାରକୁ ବିକ୍ରୀ ପାଇଁ ପଠାଯାଇଥାଏ।

ଏତିକିବେଳେ ମୁଖିଆବାବୁ ପଚାରିଲେ — ଆଚ୍ଛା ! ଗ୍ରାମସେବକ ମହାଶୟ, ଆମର ତ ଏତେ ପଇସା ନାହିଁ ଯେ ଆମେ କାରଖାନା ବସେଇ ଏମିତି ଏଇ ତେଲରୁ ଘିଅ ତିଆରି କରିପାରିବା।

ତଥାପି ଆମେ ଶାଳମଞ୍ଜି ରଖିବା। ଆଉ ବିକ୍ରୀ କରି ଆମ

ପାଉଣାଟା ପାଇଯିବା ।

ଏହା ଶୁଣି ଗ୍ରାମ ସେବକବାବୁ କହିଲେ—ହଁ, ସେ କଥା ଠିକ୍ । କିନ୍ତୁ ସରକାରଙ୍କଠାରୁ ଋଣ ନେଇ ଆମ ଓଡ଼ିଶାର ରାଇରଙ୍ଗପୁରଠାରେ ଗୋଟିଏ ଶାଳମଞ୍ଜି ତେଲ କାରଖାନା ବସିଛି ।

ସମ୍ବଲପୁର ଜିଲ୍ଲାରେ ଏବଂ କୋରାପୁଟ ଜିଲ୍ଲାରେ ମଧ୍ୟ ଏଇ ଧରଣର କାରଖାନା ବସା ଯାଇଛି । ଖାଲି ଓଡ଼ିଶା କାହିଁକି, ଆମ ଦେଶ ଭାରତର ଅନ୍ୟାନ୍ୟ ପ୍ରଦେଶରେ ବି ଏଇ ଧରଣର କାରଖାନା ରହିଛି ।

ଆଉ ଗୋଟିଏ କଥା—ଶାଳମଞ୍ଜିରୁ ତେଲ ବାହାର କରି-ସାରିବା ପରେ ଯେଉଁ ପିଡିଆ ମିଳିଥାଏ, ତହିଁରୁ ଗାଈ-ଗୋରୁ ମାନଙ୍କର ଖାଦ୍ୟ ତିଆରି କରାଯାଏ ।

ଆହୁରି ମଜାର କଥା ହେଲା — ଶାଳଫୁଲରୁ ଯେଉଁ ଖୋଳପା ଆଉ ଡ଼େଣା ଛଡ଼ାଇ ଦିଆହୁଏ ତାକୁ ଫୋପଡା ହୁଏ ନାହିଁ ।

ସେ ସବୁକୁ ଗୁଣ୍ଡକରି ତହିଁରୁ ମୋଟା କାଗଜ ତିଆରି କରାଯାଏ । ଏଇ ଧରଣର କାଗଜସବୁ କାଗଜ ପେଟି କରିବାପାଇଁ ଦରକାର ହୋଇଥାଏ ।

ଏଇ ଶାଳମଞ୍ଜିରୁ ଯେ କେତେ ରକମର ଜିନିଷସବୁ ହେଉଛି । ସେସବୁ କଥା ସେଠାରେ ବସିଥିବା ଲୋକମାନେ ମନଦେଇ ଶୁଣୁଥିଲେ ।

ମକରା ବି ଏଇସବୁ କଥା ମନଦେଇ ଶୁଣୁଥିଲା । ଏଥର ପଚାରିଲା — ବାବୁ ! ଆମ ଶାଳବଣରେ ଶାଳଫୁଲ ଆସେ । ଫଳ ହୁଏ । ପାଚେ । ତା'ପରେ ଗଛରୁ ଆପେ ଆପେ ଖସି ପଡେ । ହେଲେ, ଆମେ ସେଇ ଫଳକୁ ଅଦରକାରୀ ଭାବି ଏତେଟା ନଜର

ଦେଉ ନଥିଲୁ। ଏଥର ବାବୁ ଆମେ ବୁଝିଗଲୁ। ଶାଳଫଳ ରଖିବା। ତା'ପରେ ବିକିଦେବା। ହାତକୁ ବି ଦି-ପଇସା ଅଧିକା ଆସିବ।

ଗ୍ରାମ ସେବକ କହିଲେ- ହଁ, ତୁମେ ଠିକ୍ କଥା କହୁଛ। ଶାଳଗଛ, ଶାଳଫଳ ଆଉ ଶାଳମଞ୍ଜିକୁ ଆଦର କରି ଶିଖ। ଫଳ ଗୋଟାଇ ରଖ। ଏହାକୁ ବିକି ଭଲ ଦି-ପଇସା ରୋଜଗାର କର। ହେଲେ, ସବୁ ମଞ୍ଜିକୁ ଗୋଟାଇବ ନାହିଁ। କିଛି ନୂଆଗଛ ହେବା ପାଇଁ ଛାଡ଼ି ଦେବ।



# ଆମ ପରିବେଶ

ମକରାର ଖୁସି କହିଲେ ନ ସରେ। ସବୁବେଳେ ହସ ଖୁସିରେ ବୁଲୁଛି। ଗାଁର ଭାଇ-ଭଉଣୀମାନଙ୍କୁ କହୁଛି— ଏଥର ସବୁ ବୁଝିଲ ତ, ଶାଳବଣର କଥା।

ଆମର ଏଇ ଶାଳବଣ। ଆମ ପରିବେଶକୁ ଭଲ ରଖୁଛି। ଯେଉଁ ପବନକୁ ଆମେ ନିଃଶ୍ୱାସ-ପ୍ରଶ୍ୱାସରେ ନେଉଛୁ, ତାହା ଏହି ଗଛ ପାଇଁ ସଫା ହୋଇ ପାରୁଛି।

ଏହାରି ପାଇଁ ଭଲ ବରଷା ହେଉଛି। ଆଗ କାଳରେ ରାଜା, ଜମିଦାର ମାନେ ରାସ୍ତାକଡ଼ରେ ଗଛ ଲଗାଉଥିଲେ। ବାଟରେ ଯାଉଥିବା ଲୋକେ ସେଇ ଗଛ ମୂଳରେ ଘଡିଏ ବସି ଥକ୍‌କା ମାରୁଥିଲେ। ମକରା କହୁଛି— ତାହାହେଲେ ଏ ଗଛକୁ ତ ହାଣିବା ମୋଟେ ଠିକ୍ ନୁହେଁ।

ଏବେ ସରକାର ଚାରିଆଡ଼େ ଗଛ ଲଗାଉଛନ୍ତି। କହୁଛନ୍ତି— ଆମ ଦେଶରେ ଯେତିକି ବଣ-ଜଙ୍ଗଲ ରହିବା କଥା, ତାହା ଆଉ ନାହିଁ।

ଲୋକମାନେ ମନଇଚ୍ଛା ବଣ ଜଙ୍ଗଲରୁ ଗଛକାଟି ସଫା କରି ଦେଉଛନ୍ତି। ଏମିତି ଯଦି ଚାଲିବ, ତେବେ ବଣ କୁଆଡେ ଉଭେଇଯିବ। ବର୍ଷାବି ହେବ ନାହିଁ। ଦେଶରେ ମରୁଡ଼ି ଦେଖାଦେବ। ଲୋକମାନେ ଚାଷ କରି ପାରିବେ ନାହିଁ। ଶେଷରେ ଖାଇବାକୁ ନ ପାଇ ମରିଯିବେ।

ଆଉ ଏକ ଅଜବ କଥା ମକରା ପୁଣି କହୁଥିଲା। କଥାଟି ସତ। ଏଇ କେଇଦିନ ତଳେ କୁଆଡ଼େ ଗୋଟିଏ ଗାଁର ସବୁଲୋକ, ଗାଈ-ଗୋରୁ ମରୁ ମରୁ ବଞ୍ଚିଗଲେ। କାରଣ ହେଲା- ସେଇ ଗାଁ

ପାଖରେ ଗୋଟିଏ କାରଖାନା ଥିଲା। ପ୍ରତିଦିନ ବହୁତ ଧୂଆଁ ସେଇ କାରଖାନାରୁ ବାହାରେ। ଧୂଆଁ ଯାଇ ପବନରେ ମିଶେ। କିଛି ଦିନ ଏମିତି ଚାଲିଥିଲା। କେହି କିଛି ଜାଣି ପାରୁ ନଥିଲେ।

ଦିନେ କଣ ହେଲା ନା- ଯେତେବେଳେ ସେଇ ଧୂଆଁ ବଢ଼ିଗଲା ତାହା ପବନକୁ ବିଷାକ୍ତ କରିଦେଲା। ଲୋକେ କୁହାକୁହି ହେଲେ- ଏଥିପାଇଁ ପବନରେ ଅଙ୍ଗାରକାମ୍ଳ ଗ୍ୟାସର ପରିମାଣ ବଢିଗଲା। ସେଇ ଗାଁର ଲୋକମାନେ ସେଇ ପବନକୁ ନିଃଶ୍ୱାସରେ ନେଲେ। ଏଇ ଗ୍ୟାସ୍‌ଟି ଆମ ପାଇଁ ବିଷ। ତେଣୁ ସେଇ ବିଷ ଗ୍ୟାସ୍ ଦ୍ୱାରା ସେଠାରେ ଲୋକମାନେ ଅଚେତ୍ ହୋଇ ପଡିଲେ।

ହେଲେ, ଖବର ଜଣା ପଡିଲାରୁ ଡାକତର ସେ ଗାଁକୁ ଗଲେ। ଲୋକମାନଙ୍କୁ ବଞ୍ଚେଇ ଦିଆଗଲା।

ଏଥିପାଇଁ କେତେ ବିଚାର ଆଲୋଚନା ହେଲା। ଶେଷରେ କରାଖାନାଟିକୁ ଏକ ନିଛାଟିଆ ଯାଗାକୁ ନିଆଗଲା।

ମକରା କହୁଥିଲା-ଆଗରୁ ସେଇ କାରଖାନା ଯାଗାରେ ବହୁତ ଗଛ ଥିଲା। କାରଖାନା ବସିଲାବେଳେ ସବୁଗଛ ହଣାହେଲା। ଲୋକମାନେ ବି ନିଜ ନିଜ କାମରେ ଅନେକ ଗଛ କାଟି ପକେଇଲେ। ରହିଥିବା ଜଙ୍ଗଲ ସଫା ହୋଇଗଲା।

କାରଖାନାରୁ ବାହାରୁଥିବା ଗ୍ୟାସରେ ଅଙ୍ଗାରକାମ୍ଳ ବେଶୀ ଥିଲା। ଗଛ ଗୁଡିକ ଥିଲାବେଳେ ସେଇ ଗ୍ୟାସ୍‌କୁ ସେମାନେ ନେଇ ତାଙ୍କର ଖାଇବା ଜିନିଷ ତିଆରି କରୁଥିଲେ। ଗଛ ସବୁ ସଫା ହୋଇଗଲା ପରେ ସେଇ ଗ୍ୟାସ୍ କୁଆଡେ ଯାଇ ପାରିଲା ନାହିଁ।

ତେଣୁ ସେଇ ବିଷ ଗ୍ୟାସ ଲୋକମାନଙ୍କର କାଳ ହେଲା। ଏବେ କଳ କାରଖାନା ଯଦି କେଉଁଠି ବସୁଛି,ତେବେ ତା'ରି ଚାରିପାଖରେ ଗଛ ଲଗେଇବା ପାଇଁ ଆଇନ କରି ଦିଆଯାଇଛି। ଯିଏ ତାହା



ନ ମାନିବ, ସେ କାରଖାନା ବସେଇ ପାରିବ ନାହିଁ।

ମକରା ପୁଣି କହୁଥିଲା- ଭାଇମାନେ! ଗଛ ଆମ ପାଇଁ। ଆଉ ଆମେ ଗଛ ପାଇଁ। ଗଛର ଜୀବନ ଅଛି। ସିଏ ତା'ର ଖାଦ୍ୟ ପାଇଁ ଅଙ୍ଗାରକାମ୍ଳ ଗ୍ୟାସ ଦରକାର କରିଥାଏ। ଆମେ ଅଙ୍ଗାରକାମ୍ଳ ଗ୍ୟାସ ଛାଡୁ। ଗଛ ଆମ ପାଖରୁ ତାହାନେଇ ତା ବଦଳରେ ଆମକୁ ଅମ୍ଳଜାନ ଗ୍ୟାସ୍ ଦେଉଛି। ଏହା ଆମର ଜୀବନ।

ଏମିତି ଅନେକ ରକମର ଭଲ ଭଲ କଥା କହି ମକରା ଗାଁ ବାଲାଙ୍କୁ ମନେଇ ସାରିଲାଣି। ତା'ରି ଦ୍ୱାରା ଯୁବକ ସଂଘଟିଏ ବି ଗଢ଼ା ହୋଇଛି। ସେଇ ସମିତିର ଲୋକମାନେ ନିଜ ନିଜର ବାଡ଼ି ବଗିଚାରେ ଗଛ ଲଗାଉଛନ୍ତି।

ଆଉ ଗୋଟିଏ କଥା ମକରା କହୁଛି। ଶୁଖିଲା ଶାଳପତରକୁ ଆମେ ପୋଡ଼ି ଦେଉଛୁ। ହେଲେ ଏ ପତରକୁ ଘରର ଅଳିଆ ସାଥିରେ ମିଶାଇଦେବା। ସେ ଗୁଡିକୁ ପୋତିଦେବା। କିଛି ଦିନ ପରେ ସେଥିରୁ ଭଲ ଖତ ପାଇବା। ଗଛର ଜୀବନ ଅଛି। ମଣିଷ ମାରିଲେ ଯେତିକି ପାପ, ଗଛ କାଟିଲେ ବି ସେଇଆ।

# ମକରା ପୁରସ୍କାର ପାଇଲା

ଆଜି ଗାଁ ଦାଣ୍ଡ ଦୁଲୁକୁଛି। ସଭା ହେବ। ମକରା ପ୍ରକୃତିବନ୍ଧୁ ପୁରସ୍କାର ପାଇବ। ସରକାର ଦେବେ।

ତା'ରି ପାଇଁ ଶାଳବଣ ରହିପାରିଛି। ଗଛକଟା ବନ୍ଦ ହୋଇ ଯାଇଛି। ନିଜ ଗାଁ ଆଉ ଆଖ ପାଖ ଗାଁ ମାନଙ୍କରେ ଲୋକମାନେ ଗଛ ଲଗେଇବା ପାଇଁ ଆଗେଇ ଆସିଛନ୍ତି। ସଭିଙ୍କୁ ପରିବେଶ ବିଷୟରେ ସେ ବୁଝାଇ ପାରିଛି।

ସଞ୍ଜବେଳକୁ ସଭା ଆରମ୍ଭ ହେଲା। ସହରରୁ କେତେଜଣ ବାବୁ ଆସିଥିଲେ। ସଭାରେ ସମସ୍ତେ ମକରାର କାମ ପାଇଁ ପ୍ରଶଂସା କରି କେତେ କଥା କହିଲେ। ତା'ରି ପାଇଁ ଜଙ୍ଗଲ ରକ୍ଷା ହେଲା। ପରିବେଶକୁ ସଫା ରଖିବା ଶିଖିଲେ। ମକରା ସେଇଥିପାଇଁ ପ୍ରକୃତିବନ୍ଧୁ ପୁରସ୍କାର ପାଇଲା। ଫୁଲମାଳରେ ତା ବେକ ପୂରିଗଲା।



Printed at M/s Shagun Offset, New Delhi

